# ଥାଇଲା ଥାଇଲା ପିଢ଼ିରି ପାଠ



ମଡ଼ିଷା ଲିମିଟେଡ୍

ଦାଶ ବେଣହୁର

Digitized by srujanika@gmail.com

# ଆଇଲା ଆଇଲା ଘିଡ଼ିରି ଘାଉ

ଲେଖକ:

ଦାଶ ବେନହୁର



ଇଷ୍ଟର୍ଣ୍ଣ ମିଡ଼ିଆ ଲିମିଟେଡ୍,

ଭୁବନେଶ୍ୱର

*Digitized by srujanika@gmail.com*

# ଆଇଲା ଆଇଲା ଘିଡ଼ିରି ଘାଡ଼ୁ

**ଲେଖକ:**

ଦାଶ ବେନହୁର

**ପ୍ରକାଶକ:**

ଇଷ୍ଟର୍ଣ୍ଣ ମିଡ଼ିଆ ଲିମିଟେଡ୍
ଏ–୬୨, ନୂଆପଲ୍ଲୀ, ଭୁବନେଶ୍ୱର–୭୫୧୦୦୩

**ମୁଦ୍ରାକର:**

ଉତ୍କଳ ସମ୍ବାଦ ପ୍ରକାଶନ (ପ୍ରା.) ଲିଃ
ଏ–୬୨, ନୂଆପଲ୍ଲୀ
ଭୁବନେଶ୍ୱର–୩

**ପ୍ରଚ୍ଛଦ:**

ରଞ୍ଜିତ ପରିଡ଼ା

**ଅଳଙ୍କରଣ:**

ସୁଧାଂଶୁ ଦେଓ

**ସ୍ୱତ୍ୱ:**

ଜୟନ୍ତୀ ଦାଶ
ଜେ.ଜେ. ପବ୍ଲିକେଶନ୍ସ, ଭୁବନେଶ୍ୱର

**ମୂଲ୍ୟ: ୭.୦୦**

ପ୍ରଥମ ସଂସ୍କରଣ: ୧୯୮୯

*Digitized by srujanika@gmail.com*

## ସୂଚୀପତ୍ର


| ବିଷୟ | ପୃଷ୍ଠା |
| --- | --- |
| ୧. ତୁଉକୁ ମୁଣ୍ଡି | ୫ |
| ୨. ମେଘରୁ ପଡ଼ିଲା ଦୁମ୍ | ୭ |
| ୩. କୋଳି | ୯ |
| ୪. ଶୀତ ଆଇଲାରେ | ୧୧ |
| ୫. ଘୁଡ଼ି | ୧୩ |
| ୬. ବୁଢ଼ା କେଉଟକୁ ପଚାର | ୧୫ |
| ୭. ଚଷମା | ୧୭ |
| ୮. ଫୁଲ ଡିବିଡିବି ଫୁଟିଲା | ୧୯ |
| ୯. ପାଦ | ୨୧ |
| ୧୦. ଗାଆଁକୁ ଫେରିଚାଲ | ୨୩ |
| ୧୧. ମାଛ | ୨୫ |
| ୧୨. ଗଛିଠା ଆଇନି ଯାଇଚି ହାଟ | ୨୭ |
| ୧୩. ଅଫିସ୍ | ୨୯ |
| ୧୪. ଆଇଲା ଆଇଲା ଘିଡ଼ିରି ଘାଡ୍ରୁ | ୩୧ |
| ୧୫. ନଈ | ୩୩ |
| ୧୬. ଟିକିଟିକି ଲାଇଟି | ୩୫ |
| ୧୭. ଅମାନିଆଁ | ୩୭ |
| ୧୮. ବୁଢ଼ାବୁଢ଼ୀ | ୩୯ |
| ୧୯. କିଏସେ ଖାଏ ଭୋଗ | ୪୧ |
| ୨୦. ସତମିଛ | ୪୩ |


*Digitized by srujanika@gmail.com*

# ତୁଉକୁ ମୁଉଁ

ତୁଉକୁ ମୁଉଁ,
ମୁଉଁକୁ ତୁଉ,
ଦୁଧଭାତ ପରି ଘଣି ;
ତୋଓମୋ କଥା
କଥାର ଲଥା
କିଏ ସେ ପାରିବ ଜାଣି ॥୧॥

ମାଉସୀ ମାଈଁ,
ମାଈଁ ମାଉସୀ,
ଆସିଥିଲେ ଆମ ଘର ;
ଦିନଟେ ରହି
ଆସିବୁ କହି
ଆମକୁ କରିଲେ ପର ॥୨॥

ମାଛ ମାଉଁସ
ମାଉଁସ ମାଛ
ତରକାରୀ ଭଜାଭଜି ;
ବେସର ଝୋଳ
ଖଟା ଆମ୍ବିଲ
ନହେବ କିଏ ସେ ରାଜି ॥୩॥

ନାଲିଆ ନେଳି
ନେଳିଆ ନାଲି
ଝୁମୁଝୁମୁ ହାତକାଚ ;
ସାଇ ସଙ୍ଗାତ
ମକର ମିତ
କୁଆଁର ପୁନେଇ ନାଚ ॥୪॥

ମୋ ହାତରେ ଧନଲୋ
ତୋ ହାତରେ ମନ ;
ତଉଲି ଦେଲେ
କହତ କିଏ
ପାଇବ ସନମାନ ॥୫॥

Digitized by srujanika@gmail.com

# ମେଘରୁ ପଇଲା ଦୁମ୍

ଖାଉଚି ଖାଉଚି ଖାଉଚିରେ
ଆକୁଡୁ ମାକୁଡୁ ପିଠା
ପିଉଚି ପିଉଚି ପିଉଚିରେ
ଲାକୁରୁ ମାକୁରୁ ମିଠା ।୧।

ଶୋଇଚି ଶୋଇଚି ଶୋଇଚିରେ
ତାକିଆ ପାକିଆ ଦେଇ
ବଇଚି ବଇଚି ବଇଚିରେ
କାଇଆ ଗାଇଆ ହେଇ ।୨।

ଦେଖୁଚି ଦେଖୁଚି ଦେଖୁଚିରେ
କଟର ପଟର ଖେଳ
ଚାଖୁଚି ଚାଖୁଚି ଚାଖୁଚିରେ
ନଲର ଦଲର ଝୋଳ ।୩।



ତାଡୁଚି ତାଡୁଚି ତାଡୁଚିରେ
ଫିଟିନି ଫିଟିନି ଗାଡ଼
ମାଡୁଚି ମାଡୁଚି ମାଡୁଚିରେ
ସିଟିଲି ବିଟିଲି ହାଡ଼ ।୪।

ଖୁଉଟୁ ଘୁଡ଼ ଖୁମ୍
ମେଘରୁ ପଇଲା ଦୁମ୍
ମେଘ ଉପରେ କିଏରେ
କାଳିଆ ମାଳିଆ ଯିଏରେ ।ଶେଷ ।



Digitized by srujanika@gmail.com

# କୋଳି

କୋଳି ଖାଇବ
କିଏ ସେ ଆସ
ଖାଇବ କିଏ କୋଳି,
ଝଡ଼ି ପଡୁଚି
ପାଚିଲା କୋଳି
ଆସରେ ବେଗେ ଚଳି ।୧।

କୋଳି,
ଭଇଁଚ କୋଳି,
କଣ୍ଟେଇ କୋଳି,
ବରକୋଳି କ୍ଷୀରୀ କୋଳି,
କଣ୍ଟା ସାଲୁବାଲୁ ଗହଳ ସିନା,
ସୁଆଦ ପଣକୁ ମେଳି ।୨।

କୋଳି,
ଅଙ୍ଗୁର କୋଳି,
ଜାମୁର କୋଳି,
ଗୁଆ କୋଳି ଚାରକୋଳି
ଲିଚୁ କୋଳି ଲାଗେ ଆହାକି ମଜା
ଖାଇବା ପାଇଁକି କଳି ।୩।

କୋଳି,
ଅଁଳା କୋଳି,
ବଉଳ କୋଳି,
ବରକୋଳି ବେତକୋଳି,
କଷା ଖଟା ସିନା ଟକଳ ଭାରୀ
ମନଟା ହଉଚି ଗୋଳି ।୪।

କୋଳି,
ଖଜୁରୀ କୋଳି,
କାବୁଲି କୋଳି,
ଲୁଣି ଲୁଣିକିଆ କୋଳି,
ରହ ଭାଇମାନେ ଟିକିଏ ରହ,
ଏଇଲେ ମୋଓର ପାଳି ।୫।

କୋଳି,
ପାଚିଲା କୋଳି,
ଭଳିକି ଭଳି,
କେତେ ଜାତି କେତେ କୋଳି,
ମଣିଷ ଚଢ଼େଇ ସଭିଏଁ ବାଇ
ଖାଇବାକୁ ଦଳାଦଳି ।୬।



Digitized by srujanika@gmail.com

# ଶୀତ ଆଇଲାରେ

ଶୀତ ଆଇଲାରେ, ଗୀତ ଗାଇଲାରେ
ଆଇଲାରେ ହେଇ ଶୀତ
ଗରମ ସାଙ୍ଗରେ, ପକେଇ ଅପଡ଼
କାକର ସାଙ୍ଗରେ ମିତ ।୧।
ଫୁଲ କେତେ ଜାତି ଫୁଟେ ନିତିନିତି
କେତେ ଭଳି ଭଳି ଫୁଲ
ଗେଣ୍ଡୁ ମକଦଲୀ ସେବତୀ ବଧୁଲୀ
ସୁନେଲି ସୋରିଷ ଫୁଲ ।୨।
ବାସ ଉକୁଟିଲା ମାଟି ମହକିଲା
ଚହଟିଲା ପରା ବାସ
ପତର ଗହଳେ ହେମାଳେ ହେମାଳେ
ଝରିପଡ଼େ ମିଠା ହସ ।୩।
ଉଠି ପଡ଼ ଭାଇ ଧଡ଼ପଡ଼ ହୋଇ
ଛାଡ଼ି ମାଆ କୋଳ ଶେଯ
କୋଉ ସକାଳରୁ ଖରା ଖେଳିଲାଣି
କୁହୁଡ଼ି କଲାଣି ଲାଜ ।୪।
ଶୀତ ଛୁଇଁଦେଲେ ଓଠ ଥରେ ସିନା
ମନ ହସେ କିରିକିରି
ସବୁଆଡ଼ ଦିଶେ ଫୁଲରା ଫଳରା
ମାଟି ହସେ ସିରିସିରି ।୫।



ଆସଶୀତ ନାନୀ ଆସ ;
ନିଆଁ ପୋଇଁ ଟିକେ
ଖଳାରେ ବସିଲେ
ମୁହଁରେ ଫୁଟିବ ହସ ।ଶେଷ ।





Digitized by srujanika@gmail.com

# ଘୁଡ଼ି



ସାଆତେ ସତର
ସତୁରୀ ସତା,
ଘୁଡ଼ିରେ ନାଗିଚି
ନମ୍ବରି ସୂତା,
ଅଟେଇ ନଉଚି ଟାଣି ;
ମେଘରେ ଖେଳୁଚି
ଠିକିରି ରାଣୀ
ପବନ ପିଉଚି ଛାଣି ।୧।

ସୁରୁକେ ପବନ
ତରକେ ମଥା,
ଭଗିଆ ଘୁଡ଼ିରେ
ଡବଲ ନଥା,
ଟିଇକୁ ମାରଇ ଆଡ଼ ;
ଭଉଁରୀ ଖାଇଲେ
ମାରିବ ଗୋତ୍
କାଟିବି ଧଡ଼ମ୍ ଧାଡ଼ ।୨।

ପାଣିକି ପବନ
ଫେରିଆ ଫେରି,
ଘୁଡ଼ିରେ ବାଜୁଛି
ଆଉଁଷା ପରି,
ଚମକି ଯାଉଚି କାନି ;
ମାନ୍‌ଝା ସୂତାରେ
ଗଈଠା ପେଟି
ଠିକିରି ଖେଳୁଚି ମାନି ।୩।

ନହକା ନହକା
ବାଉଁଶ ଖାଡ଼ି,
ଲୋଟଣୀ ମାରେ ମୋ
ଲଇଲା ଘୁଡ଼ି,
ଉହୁଙ୍କେ ହାବେଳି ପରି ;
ତେରେଛା କାଟିଲେ
ସାଆଁଇ ଖସେ,
ପବନ ଦିଫାଳ କରି ।୪।

ଘୁଡ଼ି ଖେଳୁଥିଲେ
ମୋ ମନ ଖେଳେ
ବଣରୁ ବଉଦ ଯାଏଁ ;
ମାଟିରେ ଥାଇ ମୁଁ
ଆକାଶେ ଘୂରେ
ମୋ ମନ ପବନେ ଧାଏଁ । ଶେଷ ।





Digitized by srujanika@gmail.com

# ବୁଢ଼ା କେଉଟକୁ ପଚାର



ବଗରେ ବଗ,
ଚାଲୁଚୁ କାହିଁକି ଡଅଗ ଡଗ,
କୂଳରେ କୂଳରେ ଧାଇଁ
ତରକି ଯିବରେ
ଟୁପୁସି ମୀନ
କାଇଁଲେ ଖେଳିବ ନାଇଁ ।୧।



ମୀନ ଲୋ ମୀନ,
ହଉଚୁ କାଇଁକି କଅନ କନ
ବଗୁଲା ଗଲାଣି ଘର ;
ରାତିକି ଆସିବ କାଳିଆ ଓଧ
ଓଦାରେ ସଅର ସର ।୨।

ଓଧରେ ଓଧ,
ମୁଣ୍ଡରେ ଗୋବର ଡୁଉଟା ଗଧ
ପହିଁରେ ଥିଇରି ଥିରି ;
ନଇଲେ ଶୁଭିବ
ଚବର ଚବ
ମାଛଟା ଡରୁଆ ଭାରି ।୩।



ମାଛରେ ମାଛ,
କହିଲୁ କୋଉଠି ନଅଟା ମିଛ
ସେଇଥି ପାଇଁକି ତତେ ;
ଖାଇବା ପାଇଁରେ
ସଭିଏଁ ବାଇ
ଫିକର ବସେଇ କେତେ ।୪।



ବାଡ଼ି ପୋଖରୀରେ ଆମ.....ର
ବଗ ଓଧ ମିଶି ଅଠ.....ର
ମାଛ ଗଣାଗଣି
କିଏ କରିବ
ବୁଢ଼ା କେଉଟକୁ ପଚା.....ର ।ଶେଷ ।





Digitized by srujanika@gmail.com

# ଚଷମା

ଚଷମା ଦେଇ ସୁଦାମ ଭାଇ
ପଢୁଛି ମୋଟା ବହି,
ଗୋସେଇଁ ନନା କରଇ ପୂଜା
ଚଷମା ନାକେ ଥୋଇ ॥୧॥
ଆମ ଗାଆଁର ଗୋପି ଗାହାଣ
ବୋତଲ ତଳ ପରି,
ଏଡ଼ିକି ମୋଟା ଚଷମା ନାଇ
ପୁରାଣ ପଢ଼େ ଭାରି ॥୨॥
ନେଳି ଚଷମା କଳା ଚଷମା
ଚଷମା ଯବ କାଚ ;
ବଅସ ଦେଖି ବେଳ ପରଖି
ଆସଇ ଆଗ ପଛ ॥୩॥
ଯାତରା ଦେଖି ଯାଏଁ ମୁଁ ଯେବେ
ଜରି ଚଷମା ପାଇଁ ;
ଜାଣେନା ମୁଇଁ କାହିଁକି ମନ
ହୁଅଇ ହାଇଁପାଇଁ ॥୪॥

ଚଷମା ଆଖି ମୁହଁରେ ବାପା
ଦେଲେରେ ମତେ ଚାହିଁ,
ପଡିଏ ହେଲେ ମିଛ କଥା ମୁଁ
ନପାରେ କେବେ କହି ॥୫॥
ଆଖି ଯୋଡ଼ିକ ଅସଲ ଧନ
ମଣିଷ ଦେହେ ଭାଇ ;
ଆଖି ହୁଡ଼ିଲେ ଚଷମା ଲୋଡ଼ା
ସବୁ ଦେଖିବା ପାଇଁ ॥୬॥
ଖାଇଲେ ବେଶି ପନି ପରିବା
ସବ୍‌ଜି ଶାଗ ଖଡ଼ା ;
ହୁଏନା ଆଖି ଦୁରୁବଳିଆ
ଚଷମା କିଆଁ ଲୋଡ଼ା ॥ଶେଷ॥



Digitized by srujanika@gmail.com

# ଫୁଲ ଡିବି ଡିବି ଫୁଟିଲା

ଖରାଗଡ଼ି ଗଲା ପାଣିକି
ପାଣି ଗଡ଼ିଗଲା ସେଣିକି
ସେଣିରେ ଭଅଁର ଘର ;
ଜଉ ଜକଜକ କବାଟ ଠିଆ
ଭଅଁର ଝିଅକୁ ଡର ।୧।

ଝିଅ ସୁକୁମାରୀ କନିଆଁ
ସୁନା ଚିକିଚିକି ପାନିଆଁ
ପାନିଆଁ ଦାନ୍ତରେ ହୀରା ;
ଘରେ ଭଅଁରାଣୀ କରିବ କିସ
ଭଅଁର ମାରୁଚି ଚିରା ।୨।

ହେଇ ଅଇଲାରେ କାଳିଆ
ଦିହ ପଟା ପଟା ଫାଳିଆ
ଅଜାଡ଼େ ସରଗ ଫୁଲ ;
ଖୋଲା ଝରକାରେ ବିଜୁଳି ଖେଳ
ମାଟିକି କରୁଚି ଗେଲ ।୩।

ଫୁଲ ଡିବି ଡିବି ଫୁଟିଲା
ଫୁଟା ଫୁଲ ସବୁ ଲୋଟିଲା
ବାସନା ଚହଟେ ଚାଉଁ ;
ଗଲା ଛାଡ଼ି ଗଲା ହୁରୁମା ଜର
ବରଷା ସାଉଁକୁ ସାଉଁ ।୪।

ଭଅଁରୀ ମାଆଲୋ ଭଅଁରୀ ମାଆ
ଫୁଲରୁ ଅତର ଦେ
ପଇସା ଗୋଟିକୁ ଅତର ଟୋପେ
ହିସାବ ନକରି ନେ ।ଶେଷ।



Digitized by srujanika@gmail.com

# ପାଦ



କୁନି କୁନି ପାଦ
କୁନି ଭାଇର
ପବନକୁ ମାରେ ଗୋଇଠା ;
କୁନି ଦିପାଳୀର
ପାଦଟି ନାଇଁ
ବଇଚିରେ ମାଡ଼ି ବଇଠା ॥୧॥
ପାଦ ପଡୁଥିଲେ
ପାହୁଲ ପଡ଼େ
ବାଘ ମାମୁଁ ଖୋଜେ ଶିକାର ;
ସାପ ଚାଲିଯାଏ
ନପଡ଼େ ପାଦ
ମାରୁଥାଏ ମଥା ଚକର ॥୨॥
ମଚ ମଚ ପାଦ
ପକେଇ ଆସେ
ରାତିଟାରେ ଡେଙ୍ଗା ପୋଲିସି ;
ପାଦ ନାଇଁ ଦେଖି
ଆହୁଲା ମାରି
ଖେଳନ୍ତି ଭାକୁର ଇଲିସି ॥୩॥

ଟପ୍‌ଟପ୍ ଚାଲି
ରବର ଚଟି
ସନିଆ ଯାଇଚି ହାଟକୁ ;
ଥୁରୁଥୁରୁ ପାଦ
ସନିଆ ଜେଜି
ଅନିଶା କରିଚି ବାଟକୁ ॥୪॥
ଡରବର ପାଦ
ଖସଡ଼ା ବାଟ,
ଯାଇଥିଲେ ମୋଟା ମନ୍ତିରୀ ;
ଦିନେ କାଳେ ନାଇଁ
ଆଇଲେ କିଆଁ
ପଙ୍କରେ ଗଲେତ ବତୁରି ॥୫॥
ଝୁମୁଝୁମୁ ଶୁଭେ
କାହାର ପାଦ
ଡେରିଥାଅ କାନ ଥିଇରି ;
ଟଙ୍ଗ ଟଙ୍ଗ ଚାଲେ
ଯୋଉ ପିଲାଟା
ସାଙ୍ଗ ନୁହେଁ ସିଏ ବଇରି ॥୬॥





Digitized by srujanika@gmail.com

# ଗାଆଁକୁ ଫେରି ଚାଲ

ସଛି ମଉସା
ସଛି ମଉସା !
ବସିଚ ଏଠି କିଆଁ
ଚାଲୁନ ଟିକେ
ବୁଲି ଆସିବା
ଆମରି ଛୋଟ ଗାଆଁ ।୧।

ଗାଆଁରେ ଆମ
ଆଜିଯାଏଁ ବି
ବିଜୁଳି ବତୀ ନାହିଁ
ଯୋତା ମଡ଼େଇ
ବୁଲିବା ପାଇଁ
ସଡ଼କ ଅବା କାହିଁ ।୨।

ଖରା ଦିନରେ
ଚାଲେନା ଏଠି
କଳ ବିଞ୍ଚଣା କାହିଁ
ନଣ୍ଡ ପୋଖରୀ
ଆଉଟୁ ପାଟୁ
ମଣିଷ ପଶୁ ବାଇ ।୩।

ବରଷା କାଳେ
ଭୁଷୁଡ଼େ ଘର
ଗୋଳିଆ ପାଣି ପଶେ
ପଚର ପଚ
କାଦୁଅ ବାଟ
ଚାଲିଲେ ଗୋଡ଼ ଖସେ ।୪।

ଶୀତ ଆସିଲେ
ବାଘ ପରିକା
ଆସଇ ହିମ ଜାଡ଼
ଗରମ ଲୁଗା
କିଣିବ କିଏ ?
ଥରଇ ମେରୁ ହାଡ଼ ।୫।

ତୁମରି କଥା
ପଡୁଚି ମନେ
ଗାଆଁଟା ଭାରି ଭଲ
ଚାକିରି ପରେ
ରହିଚ କିଆଁ
ଗାଆଁକୁ ଫେରି ଚାଲ ।୬।

ଦେଶଟା ସାରା
ଗାଆଁରେ ଭରା
ଗାଆଁଟା ପରା ଧନ
ତଥାପି କିଆଁ
ସହର ଆଡ଼େ
ଧାଇଁଚି ସବୁ ମନ ।ଶେଷ।



Digitized by srujanika@gmail.com

# ମାଛ



ମାଛ ଖେଳୁଛି
ମଝି ପାଣିରେ
ଅତଳ ତଳ ପାଣି ;
ଏଡ଼ିକି ପେଟ
ଏଡ଼ିକି ମୋଟ
ହାକିମ ପରି ଠାଣି ॥୧॥

ପାଣି ଭିତରେ
ଦିନଟା ରାତି
ରାତିଟା ହୁଏ ଦିନ,
ମୋଟୁଆ ମାଛ
ନିଶକୁ ମୋଡ଼ି
ଏକ୍‌ଲା କାଟେ ଦିନ ॥୨॥

ବଲୁଆ ସିନା
କୂଳକୁ ଆସି
ଖେଳିବା ପାଇଁ ଡର ;
ପଙ୍କରେ ପଶି
ହୁଙ୍କାର ଛାଡ଼େ
ଏକ୍‌ଲା କରେ ଘର ॥୩॥



ଦଣ୍ଡେଇ ଛାର
ବକଟେ ମାଛ
ମକର ମିତ ଧରି ;
କୂଳରୁ ମଝି
ମଝିରୁ କୂଳ
ଖେଳେ ମଉଜ କରି ॥୪॥

ଛୋଟିଆ ପାଇଁ
ପଡ଼େନା ଫାଶ
ସଚରାଚର କାହିଁ ;
ମୋଟୁଆ ମାଛ
ଧରିବା ପାଇଁ
କେଉଟ ହୁଏ ବାଇ ॥୫॥

ଦେହରେ ଯେତେ,
ଝିଏରେ ବଡ଼
ହେଉ ସେ ଯେତେ ଯେତେ ;
ମନରେ ଯଦି,
ହୋଇନି ବଡ଼
କି ଲାଭ କହ ସତେ ॥୬॥



Digitized by srujanika@gmail.com

# ଗଇଁଠା ଆଇନି ଯାଇଚି ହାଟ

ଅମାଲୁ ଦମାଲୁ
ଦିଇଟା ପିଠା,
କୁଣିଆ ଲୋଡ଼ିଲେ
ତାଳ ଗଇଁଠା,
ତାଳ ଗଇଁଠାର
କୁଆଡ଼େ ଘର,
ଡାକ ପିଅନକୁ
ଯାଇ ପଚାର ।୧।

ଡାକ ପିଅନର
ମୁହଁ ଖୁରୁମା,
ହାତରେ କଡ଼େଇ
ଟୁମୁକୁ ଟୁମା ।
ତେଲ ଡବଡବ
ନିଭିଲା ଚୁଲୀ,
ଗଇଁଠା ଘରଟା
ମିଠେଇ ପଲ୍ଲୀ ।୨।

ମିଠେଇ ପଲ୍ଲୀର
ମଠୁଆ ନନା,
ହାତରେ ଧରିଚି,
ହାଣ୍ଡିଏ ଛେନା
ଛେନା ଚାରିପଟେ
ବହଳ ଚୋପା,
ନନାର ମଥାରେ
ଆରିଷା ଟୋପା ।୩।

ଆରିଷା ପେଟରେ
ନଡ଼ିଆ ପୁର,
ପୁର ଦିହଯାକ
ହଜାରେ ଘର ।
ଘରକେ ନଅଟା
ଛଅଟା ଲୋକ,
ଜଣ ଜଣ କରି
କୁଣିଆ ଡାକ ।୪।

କୁଣିଆ ଅଇଲେ
ଖାଇବେ କିସ,
ଅମାଲୁ ଦମାଲୁ
ପୂଝାରୀ ବେଶ ।
ପୂଝାରୀ ବେଶକୁ
ଥନ୍ତଲ ପେଟ
ଗଇଁଠା ଆଇନି
ଯାଇଚି ହାଟ ।୫।



ହାଟରେ ଲାଗିଚି ମେଳା ;
ଗଇଁଠା ଆସ ହୋ
କୁଆଡ଼େ ଗଲ,
ଡାକୁଚି ମାଇକି ବାଲା ।ଶେଷ ।





Digitized by srujanika@gmail.com

# ଅଫିସ

ବାପା ଆମର
ତଅର ତ଼ଅର
ଅଫିସ୍ ଯିବାପାଇଁ,
ଅଫିସ ବେଳ ଉଛୁର ହେଲେ
ଚଳିବ ଜମା ନାଇଁ ॥୧॥

ଥାଉବା ଯେତେ
ଘରର କାମ
ଆମ ଅଝଟ ଅଳି,
ପଛରେ ସବୁ ପକେଇ ଦେଇ
ଯାଆନ୍ତି ବାପା ଚାଲି ॥୨॥

ଦିନେ ଦିନେ ବି
ଅଧା ଖିଆରୁ
ଆଉରି କେବେକେବେ,
ହୋଇଲେବେଳ ନଖାଇ ମୋଟେ
ଯାଆନ୍ତି ବେଗେବେଗେ ॥୩॥

ଟୁକୁନା ମାଆ
ଅଫିସ ପାଇଁ
ନିଇତି ତରତର,
କହନ୍ତି ସିଏ
ଉଛୁର ହେଲେ
ଯିବରେ ପଡ଼ି ଗାର ॥୪॥

ଅଫିସ୍ କାମେ
ଘୂରଇ ମଥା
ଅଫିସ୍ କଥା ଗପ,
ଅଫିସ୍ ଅବା
ଅସୁର ଗୋଟା
ଟିଇକୁ କରେ କୋପ । ॥୫॥

ଅଫିସ୍ କ'ଣ
ମଟର ଗାଡ଼ି
ପଳାଏ ସର ସର,
ସଅଳ ଯାଇ
ଧରିବା ପାଇଁ
ସଭିଏଁ ହରବର । ॥୬॥

ହୋଇଲେ ମୁଇଁ ବଡ଼
ଅଫିସ୍‌ଟାକୁ
ମାରିବି ନାଡେ,
ଗଡ଼ିବ ଗଡ଼ଗଡ଼ । ॥ଶେଷ॥



Digitized by srujanika@gmail.com

# ଆଇଲା ଆଇଲା ଘିଡ଼ିରି ଘାଡ୍ଡୁ

କଟର କଟର କଲ ମଣିଷ
ନାକରେ ଖାଉଚି ଲୁହା ପଣସ
ପଣସ ପେଟରେ କାଇ ;
କାଇର ମଉସା କାଳିଆ ଜନ୍ଦା,
ଡଗରା ପିମ୍ପୁଡ଼ି ଭାଇ ।୧।

ଘିଡ଼ିରି ଘିଡ଼ିରି ବାଘ ପଥର,
ମଥାରେ ଉଠିଚି ମେଘୁଆ ପର
ଆଖିରେ ନାଲିଆ ଚିତା ;
ପଥର ଛାତିରେ ଅଜଣା ଲଟା
ପତର ଗୁଡ଼ାକ ଛତା ।୨।

ଲଟର ପଟର କଣା ମଇଁଷି
ପାକୁଳି କରୁଚି ବାଉଁଶ କଷି,
ପାଟିରୁ ପଡ଼ୁଚି ଫେଣ ;
ଗୁହାଳ ଘରଟା କିଟିକିଟିଆ
ଗୁଆଳି କରିଚି ଛଣ ।୩।

ଆଗୁଲୁ ମାଗୁଲୁ ତାକୁଲୁ ଟାଇଁ
ମାଗୁଲୁ ପାଗୁଲୁ ପାଗୁଲୁ ମାଇଁ,
ପାଣିଆ ଛେରୁଆ ମନ ;
ଖୁସୁରୁ ଖୁସୁରୁ ଖଡ଼ିଆ ବାଲି,
ଯତର ଅଠର ପଣ ।୪।

ଆଇଲା ଆଇଲା ଘିଡ଼ିରି ଘାଡ୍ଡୁ
ହାତରେ ନାଇଚି ପିତଳ ଖଡ୍ଡୁ
ବେକରେ ଲାଇଟି ମାଳ ;
ଡାଆଣୀ ଆଲୁଅ ଦପର ଦପ
ଫରଚା ପୋଖରୀ କୂଳ ।୫।



Digitized by srujanika@gmail.com

# ନଈ



ସୋରି ସୋରି ବହେ ନଈ ;
ପଥର ଫଟେଇ,
ବହୁଚି ଜଳ
ଅବୁଝା ଗୀତଟି ଗାଇ ।୧।



ଭୁସୁ ଭୁସୁ ଖସେ ଧାର ;
ପ୍ରପାତ ପଡୁଛି,
ଧୂଆଁ ପରିକା,
ସତେକି କୁହୁଡ଼ି ଭାର ।୨।



ଥିରିଥିରି ନଈ ଗତି ;
ଏପଟୁ ସେପଟ,
କଳା ଘୁମର
ବୁଡ଼ିଯିବ ହାତୀଛତି ।୩।

ଘୁଉ ଘୁଉ ବଢ଼ି ପାଣି ;
ଭସେଇ ନଉଚି,
ଘର ଦୁଆର
ମରମ ହଉଚି ହାଣି ।୪।





କୁଳୁ କୁଳୁ ପାଣି କାହିଁ ;
ଅଖାଳ ମଖାଳ
ବାଲିର ଶେଯ,
ଶୋଇଚି ଶୁଖିଲା ନଈ ।୫।



Digitized by srujanika@gmail.com

# ଚିକି ଚିକି ଲାଇଟି

ଚିକିଚିକି ଲାଇଟି,
ଦିଅ ସାରି ସବୁ ପାଇଟି ;
ସକାଳୁ ସକାଳୁ ଲାଇନ୍ କଟିବ
ବିଜୁଳି ରହିବ ନାଇଁଟି ।୧।

ଚୁନି ଚୁନି ପତର,
ଟିକିଟିକି ଫୁଲ ସତର ;
ବାସନା ଚହଟେ ଏଠଉ ସେଯାଏଁ
ପାଖୁଡ଼ା ନାଇଚି ଅତର ।୨।

ଚକଚକ ବାସନ,
**ଆକାଶଟା** ଦିଶେ କେସନ ;
ନୀଲିଆ ବଉଦ ଖେଳୁଚି ଉପରେ,
ନହେବ ବରଷା ଏସନ ।୩।

ଚୁପି ଚୁପି ଅନ୍ଧାର,
ଦିଶୁନାଇଁ ବାଡ଼ି ପନ୍ଦାର ;
କଅଣ ଖାଇଚି ମଦନ ରାଉତ,
ଆଖିଟା କରିଚି ମନ୍ଦାର ।୪।

ଚବଚବ ଶବଦ,
ହୋଇଯାଏ କାନ ତବଦ ;
ଭାଇନା ଆଇଲେ କହିବି ରହିଥା
ହୋଇବ ସଭିଏଁ ଯବଦ ।୫।

ଚୁଟୁଚୁଟୁ ଚୁଟିଆ,
ଶୋଇଚିରେ ମାଡ଼ି ଖଟିଆ ;
ନିଦର ମାଉସୀ ଯାଇଚି କେଣିକି,
ଚୁଟିଆ ନିଦଟା ଘାଟିଆ ।୬।

ଚାଉଁ ଚାଉଁ ହାଉଳି,
ଗୁଲୁଗୁଲି ପାଗ କାଉଁଳି ;
ଥନ୍ତଲ ପେଟିଆ ଗଦେଇ ଗୁଡ଼ିଆ
ଗରମ ଝୋଳରେ ବାଉଳି ।୭।



Digitized by srujanika@gmail.com

# ଅମାନିଆଁ

ହେଇଟି ବୋଇଲେ
ହାଉଳି ଖାଏ,
ହଇରେ ବୋଇଲେ
ହାମୁଡ଼ି ଥାଏ,
କ[illegible]କାଠ ପରି ମୁହଁ ;
ଗଣିତ ବୋଇଲେ
ପାଣିକି ଛେଳି
ଦରମରା ଦିଶେ ଦିହ ।୧।

ଅଇଲୁ ବୋଇଲେ
ସିଆଡ଼େ ଯାଏ,
ଗଲୁରେ ବୋଇଲେ
ଗାମେଇ ରହେ,
ମୁହଁ କରିଥାଏ କେଣେ ;
ପୋଷାକ ପତର
ଯତନ ନାହିଁ
ବୁଲୁଥାଏ ଏଣେତେଣେ ।୨।



ପଢ଼ିଲୁ ବୋଇଲେ
ଠାପେଇ ଚାହେଁ,
ଦେଖିଲୁ ବୋଇଲେ
ନଦେଖି ଧାଏଁ,
କୋଉଥିରେ ନାହିଁ ମନ ;
ପାଠରେ ନାହିଁ କି
ଶାଠରେ ନାହିଁ
ସବୁବେଳେ କନକନ ।୩।



ବସିଲୁ ବୋଇଲେ
ଉଠିଆ ରହେ,
ଉଠିଲୁ ବୋଇଲେ
ଲେପେଟି ଶୁଏ
ଅମାନିଆଁ ତାର ନାଆଁ ;
ଏମିତି ପିଲାର
ହୋଇଲେ ଘଣି
ପାଠଘର ଠୋଓ ଠାଆ ।୪।



Digitized by srujanika@gmail.com

# ବୁଢ଼ା ବୁଢ଼ୀ



ବୁଢ଼ାବୁଢ଼ୀ ଦିନେ
ଖୋଳିଲେ ଗାତ,
ଖୋଳୁଖୋଳୁ ହେଲା
ସତର ହାତ
ସତର ହାତରୁ
ଦି'ହାତ ପାଣି,
ବୁଢ଼ା ବୋଲେ ବୁଢ଼ୀ
ପଇଲା ଖଣି ।୧।

ଖଣି ଖୋଳା କାମ
ଚାଲିଲା ନିତି,
ପାଣି ଶୁଖୁଶୁଖୁ
ଘଡ଼ିଏ ରାତି ।
ଖୋଳିବାକୁ ଆଉ
ନଥାଏ ବଳ,
ବୁଢ଼ୀ ବୋଲେ ବୁଢ଼ା
ଆଣିବା କଳ ।୨।

ଘାଇଁ ଘାଇଁ କରି
ଚାଲିଲା କଳ,
ଭୁଷୁଭୁଷୁ ପାଣି
ଅଥଳ ଥଳ ।
ଶେଷକୁ ପଇଲା
ଏଡ଼େ ପଥର,
ଭାଙ୍ଗିବା କଠିଣ
କେଡ଼େ ଆକାର ।୩।



ବୁଢ଼ୀ କାନେ ବୁଢ଼ା
ଧୀରେ କହଇ,
ଖଣି ପଡ଼ିଲାଣି
ପାତାଳେ ଯାଇ ।
ପାତାଳ ପୁରରେ
ମାଣିକ ରଜା,
ଜାଣିଲେ ରାଗିବ
ବୁଝିବ ଗୋଜା ।୪।

ଗାତ ଖୋଳାକାମ
ବାତିଲ୍ କରି,
ବୁଢ଼ାବୁଢ଼ୀ ଦିନେ
ଘରୁ ବାହାରି ।
ପାତାଳ ଆଡ଼କୁ
ଲଅନ୍ଧ ପଡ଼ି,
ରଖ ରଖ ବୋଲି
ଛାଡ଼ିଲେ ରଡ଼ି ।୫।



Digitized by srujanika@gmail.com

# କିଏ ସେ ଖାଏ ଭୋଗ

ଗାଆଁ ଏପଟେ ମନ୍ଦିରେ ଚାଲେ
ନିଇତି ଭୋଗରାଗ,
ଠାକୁର କିନ୍ତୁ ଖାଆନ୍ତି ନାହିଁ
ପୂଜାରୀ ମାରେ ଭାଗ ।୧।

ମାଆ କରଇ ସୂରୁଜ ପୂଜା
ଉଖୁଡ଼ା ଖଜା ଥୋଇ,
ଟିକିଏ ହେଲେ ଠାକୁର ଆସି
ଖାଆନ୍ତି କିଆଁ ନାହିଁ ।୨।

ଜେଜି ଆମର ଠାକୁର ଫଟୋ
ପୂଜଇ ସବୁଦିନେ,
ଠାକୁର କେବେ ଭୋଗରୁ ଟିପେ
ଖାଆନ୍ତି ନାହିଁ ଦିନେ ।୩।

ତୋଟା ଉହାଡ଼େ ଗାଆଁରେ ଆମ
ମଙ୍ଗଳା ପୂଜା ହୁଏ,
ଯିଏ ବି ଯାହା ମନାସୀ ଦେଲେ
ସେଇଠି ପଡ଼ିଥାଏ ।୪।

ପୁରୀ ବେଢ଼ାରେ ଏତେ ଠାକୁର
ସତକୁ ସତ କ'ଣ,
ଦିଅନ୍ତି ଖାଇ ଭୋଗ ରାଗକୁ
ପକାଇ କହ ରାଣ ।୫।

ଯେତେ ଠାକୁର ଖାଆନ୍ତେ ଯଦି
ମୁଠାଏ ଲେଖାଁ ଭୋଗ,
କହତ କିଏ ପାରନ୍ତା ଦେଇ
ନକରି ମନେ ରାଗ ।୬।

ସେଇଥିପାଇଁ ଭାଇ,
ଠାକୁର ପୂଜା
କରେ ମୁଁ ହେଲେ
ଭୋଗ ଦିଅଇ ଖାଇ ।ଶେଷ।





Digitized by srujanika@gmail.com

# ସତମିଛ



ବାଦଲ ଛାଇ
ହଳଦା ଗାଈ
ପରତେ ନ ଯିବ ଭାଇ
ଏଇଲେ ନାହିଁ
ଏଇଲେ ଏଠି
ସତ ମିଛ କିଛି ନାହିଁ ।୧।

ମିଛୁଆ ନେତା
ପୁରୁଣା ସୂତା
ଗୁଣରେ ଦି'ଜଣ ଏକା
କାମିକା ପରି
ନାଆଁକୁ ଦିଶିବେ
କାମ ବେଳେ ଠକ୍‌ଠକା ।୨।

ପଣସ ଚୋପା
ରାଗୁଆ ବାପା
ଉପରେ ଉପରେ କଣ୍ଟା
ନରମା ଭାଗୀ
ଭିତରେ ଭିତରେ
ଭୁଲି ଗଲେ ହଟହଟା ।୩।

ବାଉଁଶ ବତା
ନଡ଼ିଆ କତା
ଦେଖିଲେ ଦିଶଇ ପାତ
ଟାଆଣ ଭାଗୀ
ଠିକଣା ବେଳକୁ
ଯୁଆଳୀ ସାଙ୍ଗକୁ ଯୋତ ।୪।

ଧନିଆ ହସ
ମୋଟା ମଣିଷ
ଉପରେ ଦିଶଇ ଦାଉଁ
ଟିକିଏ ହେଲେ
ଅକଡ଼ ବାଗିଆ
ହଲକ ହୋଇବ ଫାଉଁ ।୫।





Digitized by srujanika@gmail.com

## କଥା ପଦେ:

ମଣିଷ ଖୁସିରେ ଥିଲେ ଯେମିତି ମନ ଫୁଲାଣିଆ ଗୀତ ଗାଏ, ମନ ଦୁଃଖରେ ଥିଲେ ବି ସେମିତି ଉଦାସ ଗୀତ ଗାଇ ସମୟ ବିତାଏ। ନିଛାଟିଆ ଡରୁଆ ଯାଗାରେ ମଣିଷ ପାଟିକରି ଗୀତ ଗାଇ ନିଜର ଭୟ ଦୂର କରେ। ସେତେବେଳେ ମନେହୁଏ ଗୀତ ବୋଧେ ମଣିଷର ସବୁଠୁ ବଡ଼ ସାଥୀ। ସେଇଥିପାଇଁ କହନ୍ତିନି—

ଗୀତ ସାଥୀରେ ବସିଲେ ମିତ,
ଧାଇଁ ପଳାନ୍ତି ଅସୁର ଭୂତ ॥

ଏଥିରେ ଯୋଉ ଗୀତ ଗୁଡ଼ିକ ଅଛି, ସେଗୁଡ଼ିକ ଯଦି ପିଲାମାନଙ୍କୁ ସତରେ ଭଲଲାଗେ, ତେବେ ମୁଁ ସବୁଠୁ ବେଶି ଖୁସି ହେବି।

ଲେଖକ

## ଏଇ ଲେଖକଙ୍କ ଦ୍ୱାରା ଲିଖିତ ଅନ୍ୟାନ୍ୟ ଶିଶୁ ପୁସ୍ତକ

୧. କୁନାପାଇଁ ଅନାବନା ଗୀତ (ସାହିତ୍ୟ ଏକାଡ଼େମୀ ପୁରସ୍କାର ପ୍ରାପ୍ତ) (ଶିଶୁଗୀତ)
୨. ଫନ୍ଦୁଆ ଭିତରେ ଫନ୍ଦୁଆ (ଶିଶୁଗଳ୍ପ)
୩. ପପଲ ପପଲ ପୁଁ (ଶିଶୁ ଗୀତ)
୪. ପକ୍ଷୀ ଜଗତ (ପକ୍ଷୀ ଜୀବନ କାହାଣୀ)
୫. ଟପ୍ ଟପା ଟପ୍ ପାଣି (ଶିଶୁ ଗୀତ)—ଯନ୍ତ୍ରସ୍ଥ
୬. ଇତିରି ମିତିରି (ଶିଶୁ ଗୀତ)— ଯନ୍ତ୍ରସ୍ଥ
୭. କୁନି ପାଇଁ କେତେଜାତି ଗୀତ (ଶିଶୁ ଗୀତ)—ଯନ୍ତ୍ରସ୍ଥ
୮. ଚଡ଼ୁରା ଆଉ ଚଡ଼ୁରୀ (ଶିଶୁ ଉପନ୍ୟାସ)—ପ୍ରସ୍ତୁତି ପଥେ

Digitized by srujanika@gmail.com